ଦୂର ଦେଶର ପିଲାଙ୍କ କଥା

# ଷ୍ଟେପ୍ ଅଞ୍ଚଳ:
# କିର୍ଗୀଜ୍ ପିଲା



ବିଦ୍ୟାପୁରୀ

ଦୂରଦେଶର ପିଲାଙ୍କ କଥା ୫

# ଷ୍ଟେପ ଅଞ୍ଚଳ : କିର୍‌ଗୀଜ ପିଲା



ଅଧିରାଜ ମୋହନ ସେନାପତି

ବିଦ୍ୟାପୁରୀ



ମୂଲ୍ୟ : ଟ ୬.୦୦

ନୂତନ ସଂସ୍କରଣ ୧୯୯୩

ପ୍ରକାଶକ : ପୀତାମ୍ବର ମିଶ୍ର
ବିଦ୍ୟାପୁରୀ, ବାଲୁବଜାର, କଟକ ୭୫୩୦୦୨

ଚିତ୍ରଶିଳ୍ପୀ : ସୁନାମଣି ସାମଲ
ପ୍ରଚ୍ଛଦ : ଶିଳ୍ପରୂପମ୍, କଟକ
ଟାଇପସେଟ୍ : ବିଦ୍ୟାଶ୍ରୀ ଡିଟିପି ସେଣ୍ଟର, କଟକ
ମୁଦ୍ରଣ : ରେନ୍‌ବୋ ଅଫ୍‌ସେଟ୍ ପ୍ରାଇଭେଟ୍ ଲିମିଟେଡ୍, ଭୁବନେଶ୍ୱର




## ଷ୍ଟେପ୍ ଅଞ୍ଚଳ : କିରଗୀଜ୍ ପିଲା

କାହ୍ନୁ ଦିନ ଗଣୁଥାଏ—କେଉଁଦିନ ଜହ୍ନମାମୁଁ ଆସି ପହଞ୍ଚିବେ, ତାଙ୍କ ସାଙ୍ଗରେ ପୁଣି ଥରେ ନୂଆ ଦେଶକୁ ବୁଲିଯିବ ।

ଜହ୍ନମାମୁଁ କହିଯାଇଥିଲେ ଆଉ ଦିନେ ଆସିବେ । କେବେ ଆସିବେ ? ମୋ କଥା ଭୁଲିଯାଇ ନାହାନ୍ତି ତ ?

ଏହିପରି ଭାବି କାହ୍ନୁ ମୁହଁ ଶୁଖାଇ ବସିଲା ।

ମା' ଆସି ପଚାରିଲେ—କିରେ କାହ୍ନୁ ! ତୁ ଇମିତି ଏକୁଟିଆ ବସିଛୁ କାହିଁକି ? ତୋ ଦେହ ଭଲ ନାହିଁକି ?

କାହ୍ନୁ କହିଲା—ନା ମା ! ମୋ ଦେହ ବେଶ୍ ଭଲ ଅଛି । ମନ ଭଲ ନାହିଁ ।

ମା—କାହିଁକିରେ କାହ୍ନୁ ?

କାହ୍ନୁ—ଜହ୍ନମାମୁଁଙ୍କ ପାଇଁ ।

ମା—ଜହ୍ନମାମୁଁ ତୋତେ ଏତେ ଆଦର ଯତ୍ନ କରନ୍ତି । ତୋତେ ନେଇ କେତେ କେତେ ଦେଶ ବୁଲାଇ ଆଣିଲେଣି । ତୋର ଅଭାବ ଅସୁବିଧା ଆଉ କ'ଣ ଯେ ତୁ ମୁହଁ ଶୁଖାଇ ଏକୁଟିଆ ବସିଛୁ ?

କାହ୍ନୁ—ଜହ୍ନମାମୁଁଙ୍କ ସାଙ୍ଗରେ ପୁଣି ବୁଲିଯିବି ।

ମା—ତେବେ ଜହ୍ନମାମୁଁଙ୍କୁ ଡାକ । ତୋ ଡାକ ଶୁଣି ସେ ନିଶ୍ଚୟ ଆସିବେ ।

କାହ୍ନୁ ଆକାଶକୁ ଅନାଇ ହାତଠାରି ଜହ୍ନମାମୁଁଙ୍କୁ ଡାକିଲା ।

ଜହ୍ନମାମୁଁ ଠେକୁଆ ପିଠିରେ ବସି ଉଡ଼ି ଉଡ଼ି ଆସି କାହ୍ନୁ ପାଖରେ ପହଞ୍ଚିଲେ । କହିଲେ—ରେ ଟିକି ଭଣଜା ! ତୁ ଦେଶ ବୁଲିଯିବା ପାଇଁ ପାଗଳ ହେଲୁଣି । ମୋ ସାଙ୍ଗରେ ଆ, ଆଉ ଗୋଟାଏ ଦେଶ ଦେଖି ଆସିବା ।

କାହ୍ନୁ ମନ ଭାରି ଖୁସି । ସେ ପଚାରିଲା,—''ଆଚ୍ଛା



ଜହ୍ନମାମୁଁ ଠେକୁଆ ପିଠିରେ ଚଢ଼ି କାହ୍ନୁ ପାଖରେ ଉପସ୍ଥିତ

କହିଲ ମାମୁଁ ! ଏଥର ଆମେ କେଉଁ ଦେଶକୁ ଯିବା ?"

ଜହ୍ନମାମୁଁ—ଏଠାରୁ ସିଧାସଳଖ ଉତ୍ତର-ପଶ୍ଚିମକୁ ଗଲେ ଷ୍ଟେପ୍ ଅଞ୍ଚଳରେ ପହଞ୍ଚିବା ।

କାହ୍ନୁ—ହେଉ ଭଲ କଥା, ଚାଲ୍ ।

ଠେକୁଆ ପିଠିରେ କାହ୍ନୁ ଓ ଜହ୍ନମାମୁଁ ବସି ହୁସ୍‌କରି ଉଡ଼ିଗଲେ । ଯାଇ ପହଞ୍ଚିଲେ ଷ୍ଟେପ୍ ଅଞ୍ଚଳରେ । ଦେଖିଲେ ଏ ଜାଗାଟାରେ ଆଉ କିଛି ନାହିଁ—ଖାଲି ଘାସ । ଦୂରରୁ ଦେଖିଲେ ଏହି ତୃଣଭୂମି ଭିତରେ ଗୋଟିଏ

ତମ୍ବୁ ପଡ଼ିଛି ।

କାହ୍ନୁ କହିଲା—ଚାଲ ମାମୁଁ, ସେହି ତମ୍ବୁ ପାଖକୁ ଯିବା ।

କହ୍ନୁ ଓ ଜହ୍ନମାମୁଁ ତମ୍ବୁ ପାଖରେ ପହଞ୍ଚି ଦେଖିଲେ ବାହାରେ କେହି ଲୋକବାକ ନାହାନ୍ତି । ଖରାରେ ମୁଣ୍ଡ ତାତି ଯାଉଥାଏ । ଶୋଷରେ ଜିଭ ଶୁଖି ଯାଉଥାଏ ।

ଜହ୍ନମାମୁଁ ଡହଳ ବିକଳ ହୋଇ ବାହାରୁ ଡାକ ପକାଇଲେ—କିଏ ଅଛ ହୋ !

ତମ୍ବୁ ଭିତରୁ ଜଣେ ପୁରୁଷ ଲୋକ ବାହାରି ଆସିଲେ । ଏ ଦୁଇଜଣଙ୍କୁ ଦେଖି ବଡ଼ ଆଶ୍ଚର୍ଯ୍ୟ ହୋଇଗଲେ । ଭାବିଲେ, ଏ ଅଞ୍ଚଳକୁ କେବେ କେହି ବାହାର ଲୋକ ଆସନ୍ତି ନାହିଁ । ଏ ଦୁଇଜଣ କିଏ ?

ଜହ୍ନମାମୁଁ କହିଲେ—ତମ ସାଙ୍ଗରେ ଆମର ଏହି ପ୍ରଥମ ଦେଖାସାକ୍ଷାତ । ତମେ ଆମକୁ ଚହ୍ନିନାହଁ, ଆମେ ବି ତମକୁ ଚିହ୍ନି ନାହୁଁ ।

ଯେତେ ଦୂରଦେଶର ଅଜଣା ଅଶୁଣା ଲୋକ ହେଉ ପଛକେ, ଦେଖାସାକ୍ଷାତ ହେଲେ ଚିହ୍ନା ପରିଚୟ ହୋଇଯାଏ ।

କାହ୍ନୁ ଓ ଜହ୍ନମାମୁଁ ବୁଝିଲେ ଯେ ଏ ଲୋକମାନେ କିରଗୀଜ୍ ।

ନୂଆ ଲୋକଙ୍କୁ ଦେଖିବା ପାଇଁ କିରଗୀଜ୍ ଜଣକ ତମ୍ବୁ ଭିତରୁ ଆଉ ସମସ୍ତଙ୍କୁ ଡାକିଦେଲା । ଜଣ ଜଣ କରି ବାରଜଣ ଲୋକ ବାହାରି ଆସିଲେ—ପୁରୁଷ ଲୋକ ଚାରିଜଣ, ସ୍ତ୍ରୀଲୋକ ଚାରିଜଣ, ବାଳକ ଦୁଇଜଣ ଓ ବାଳିକା ଦୁଇଜଣ । କାହ୍ନୁ ଓ ଜହ୍ନମାମୁଁ ଏତେ ଲୋକଙ୍କୁ ଦେଖି ଅବାକ୍ ହୋଇଗଲେ ।

ଜହ୍ନମାମୁଁ ପଚାରିଲେ—ତମମାନଙ୍କର ଘରଦ୍ୱାର ନାହିଁ ?

ଜଣେ କିରଗୀଜ୍ କହିଲା—ଏଇ ତମ୍ବୁ ଆମ ଘର ।



କିରଗୀଜ୍‌ମାନଙ୍କ ତମ୍ବୁ

ଜହ୍ନମାମୁଁ—ତମ୍ବୁଟି ତ ବେଶ୍ ସୁନ୍ଦର ହୋଇଛି । ଏହାକୁ ତମେ ତିଆରି କଲ କିପରି ?

କିରଗୀଜ୍—ଏଇ ତମ୍ବୁ ଆମ ଘର ।

ଜହ୍ନମାମୁଁ—ତମ୍ବୁଟି ତ ବେଶ୍ ସୁନ୍ଦର ହୋଇଛି । ଏହାକୁ ତମେ ତିଆରି କଲ କିପରି ?

କିରଗୀଜ୍—ଗ୍ରୀଷ୍ମକାଳରେ ଆମେ ଏହି ଗୋଲାକାର ତମ୍ବୁ ଭିତରେ ରହୁ । ଏହାର ଚାରିଆଡ଼ କାଠର ଜାଫରେଲି ଦେଇ ଘେରା ହୋଇଛି । ଏଗୁଡ଼ିକ ହେଲା ତମ୍ବୁର କାନ୍ଥ । ଜାଫରେଲିଗୁଡ଼ିକ ଏପରି ଖଞ୍ଜା ହୋଇଛି ଯେ ଆମେ ଇଚ୍ଛା ଅନୁସାରେ ତମ୍ବୁଟିକୁ ବଡ଼ ବା ସାନ କରିପାରୁ । ଜାଫରେଲିଗୁଡ଼ିକ ପୁରୁଷେ ଉଚ୍ଚ ହୋଇଥାଏ । ତାହା ଉପରୁ କାଠର ଲମ୍ବ ଡାଙ୍ଗସବୁ ଦଉଡ଼ିରେ ବାନ୍ଧିଦେଲେ ଛାତ ପକାଇବା ପାଇଁ ଗୋଟିଏ ଥାଟ ପ୍ରସ୍ତୁତ ହୁଏ । ତା'ପରେ ମେଣ୍ଢାଲୋମକୁ ପିଟି ଓ ଚାପାଦେଇ ପରସ୍ତ ପରସ୍ତ କରି ଛାତ ଉପରେ ଓ କାନ୍ଥ ଦେହରେ ଘୋଡ଼ାଇ ଦେଉ । ପଶୁ ଲୋମର ଦଉଡ଼ିରେ ଏହି ପରସ୍ତଗୁଡ଼ିକ ସ୍ଥାନେ ସ୍ଥାନେ ବାନ୍ଧି ଦେଉ । ଦୁଆରରେ ଗୋଟିଏ ପରସ୍ତ ଲୋମ ପର୍ଦ୍ଦାପରି ଝୁଲାଇ ଦିଆଯାଏ । ତମ୍ବୁ ଉପର ପାଖରେ ଗୋଟିଏ ଗୋଲାକାର ଜଳା ଥାଏ । ଏହି ବାଟେ ବାହାରୁ ଆଲୁଅ ଆସେ, ଆଉ ତମ୍ବୁ

ଭିତରେ ନିଆଁ ଜାଳିଲେ ତାହାର ଧୂଆଁ ଏହି ବାଟେ ବାହାରିଯାଏ ।

କାହ୍ନୁ ଓ ଜହ୍ନମାମୁଁ ତମ୍ବୁ ଭିତରକୁ ଯାଇ ଦେଖିଲେ ଯେ, କରଗୀଜ୍‌ମାନଙ୍କର ଘରକରଣା ଜିନିଷ ବେଶି ନାହିଁ । ଯାହାକିଛି ଅଛି, ସେଗୁଡ଼ିକ ହାଲୁକା ଜିନିଷ ।

ଜହ୍ନମାମୁଁ ପଚାରିଲେ—ଏତେ ଅଳ୍ପ ଜିନିଷରେ ତମେ ଚଳ କିପରି ?

କିରଗୀଜ୍ କହିଲା—ଏ ତମ୍ବୁ ଥରକୁ ଥର ଉଠାଇ ନେଇ ଆମକୁ ପଶୁମାନଙ୍କ ଚରା ଖୋଜିବା ପାଇଁ ଅନ୍ୟ ଜାଗାକୁ ଯିବାକୁ ହୁଏ । ବେଶି ଜିନିଷ ଓ ଭାରୀ ଜିନିଷ ରଖିଲେ ସେ ସବୁ ବୋହିନେବା କଷ୍ଟକର କଥା । ଆମେ ମାଟିର କୌଣସି ପାତ୍ର ବ୍ୟବହାର କରୁନାହିଁ । କାରଣ ଏଗୁଡ଼ିକ ନେଲାବେଳକୁ ଭାଙ୍ଗିଯିବ । ଆମର ଯାହାକିଛି ପାତ୍ର ଅଛି, ସେ ସବୁ କାଠ କିମ୍ବା ଚମଡ଼ାରେ ତିଆରି । ଆମେ ମେଣ୍ଢା ଚମଡ଼ାର ଥଳୀ କିମ୍ବା ବୋତଲରେ ପାଣି, ଦୁଧ, ଦହି ପୂରାଇ ନେଇଯାଉଁ । ଏଗୁଡ଼ିକ ଖସି ପଡ଼ିଲେ ବି ଭାଙ୍ଗିଯାଏ ନାହିଁ ।

କାହ୍ନୁ ଦେଖିଲା, ତମ୍ବୁ ଭିତରେ ସୁନ୍ଦର କମ୍ବଳ ଓ ଗାଲିଚା ସବୁ ବିଛା ହୋଇଛି ।

ସେ ପଚାରିଲା—ଏଗୁଡ଼ିକ ତମେ ପାଇଲ କୁଆଡୁ ?

କିରଗୀଜ୍—ଆମେ ପଲ ପଲ ମେଣ୍ଢା, ଛେଳି, ଓଟ ଓ ଗଧ ପାଳୁ । ସେମାନଙ୍କ ଲୋମରୁ କମ୍ବଳ ଓ ଗାଲିଚା ତିଆରି କରୁ ।

ଜହ୍ନମାମୁଁ ପଚାରିଲା—ଚମତ୍କାର ବାକ୍ସଗୁଡ଼ିକ ଭିତରେ କ'ଣ ଅଛି ?

କିରଗୀଜ୍—ଏହା ଭିତରେ ଗହମ-ଅଟା, ଚା ଓ ଚିନି ଅଛି । ତମ୍ବୁ ମଝିରେ ଲୁହାର ଗୋଟିଏ ବଡ଼ ପାତ୍ର ଝୁଲୁଥାଏ । ଏଥିରେ ମାଂସ ରନ୍ଧା ହୁଏ ।

ତା'ପରେ କିରଗୀଜ୍‌ମାନେ କାହ୍ନୁ ଓ ଜହ୍ନମାମୁଁଙ୍କୁ ଖାଇବାକୁ ଡାକିଲେ । କାଠ ଥାଳିଆରେ ଗହମ ଚକୁଳି, ଛେନା ଓ ଲହୁଣି ଆଣି ଦେଲେ । କାଠଗିନାରେ ଯଅରେ ତିଆରି ଜାଉ ଆଣି ଦେଲେ ।

ଜହ୍ନମାମୁଁ ଖାଉ ଖାଉ ପଚାରିଲେ—ଏ ଚକୁଳି ଖୁବ୍ ପତଳା ଓ ନରମ ହୋଇଛି । ଖାଇବାକୁ ଭାରି ଭଲ ଲାଗୁଛି । ଏହାକୁ ତିଆରି କଲ କିପରି ?

କିରଗୀଜ୍—ଏହାକୁ ଆମେ ଗହମ-ଅଟାରୁ ତିଆରି କରିଛୁ । ଗିନାରେ ଯେଉଁ ଜାଉ ଅଛି, ତାହା ଯଅ-ଅଟା, ଦୁଧ ଓ ଚିନି ଦେଇ ପ୍ରସ୍ତୁତ ହୋଇଛି ।

ଜହ୍ନମାମୁଁ—ଏଠାରେ କ'ଣ ଗହମ ଓ ଯଅ ଚାଷ ହୁଏ ?

କିରଗୀଜ୍—ନାଁ, ଏଠାରେ ଚାଷବାସ କିଛି ହୁଏ ନାହିଁ । ଆମେ କେବଳ ପଶୁପାଳନ କରୁ । ସେମାନଙ୍କ ଠାରୁ ପ୍ରଚୁର ଦୁଧ ପାଉ; ସେଥିରୁ ଦହି, ଲହୁଣି, ଛେନା ତିଆରି କରୁ । ଏହା ହିଁ ଆମର ପ୍ରତିଦିନର ଖାଦ୍ୟ । ପ୍ରତିବର୍ଷ ଆମେ ହାଟକୁ ଯାଉ । ହାଟକୁ ଅନ୍ୟାନ୍ୟ ଦେଶର ବଣିକମାନେ ଆସିଥାନ୍ତି । ଘୋଡ଼ା, ମେଣ୍ଢା, ଓଟ ଓ ଗାଲିଚା ବଦଳରେ ସେମାନଙ୍କ ପାଖରୁ ଆମେ ଲୁଗାପଟା, କାଠଥାଳିଆ, ଗହମ ଓ ଯଅ, ଅଟା, ଚା, ଚିନି, ସୂର୍ଯ୍ୟମୁଖୀ ଫୁଲର ମଞ୍ଜି ଓ ଧୂଆଁପତ୍ର ଆଣୁ ।

କାହ୍ନୁ ଓ ଜହ୍ନମାମୁଁଙ୍କୁ କିରଗୀଜ୍‌ମାନଙ୍କ ଖାଦ୍ୟ ଭଲ ଲାଗିଲା । ଜହ୍ନମାମୁଁ ପେଟୁ ଲୋକ । ସେ ପେଟେ ଖାଇଦେଇ ହାକୁଟି ମାରିଲେ ।

ଜଣେ କିରଗୀଜ୍ ସ୍ତ୍ରୀଲୋକ ଆସି ପଚାରିଲା—ପିଇବାକୁ କ’ଣ ଆଣିଦେବି ? ଦୁଧ ନା ଦହି ?

ଜହ୍ନମାମୁଁ ପଚାରିଲେ—ତମର ଏଠାରେ ଚା ମିଳେ ତ ?

କିରଗୀଜ୍ ସ୍ତ୍ରୀଲୋକ—ଏଠାରେ ଚା ମିଳେ ନାହିଁ ସତ, କିନ୍ତୁ ଆମେ ହାଟରୁ ଆଣି ରଖିଛୁ । ଏ ଚା’

ଗୁଣ୍ଡ କିମ୍ବା ପତ୍ର ଚା ନୁହେଁ । ଏହା ଇଟାପରି ମୁଣ୍ଡା ମୁଣ୍ଡା ହୋଇଥାଏ ।

କାହ୍ନୁ–ଏପରି ଚା ଅଛି ବୋଲି ମୁଁ ଜାଣି ନ ଥିଲି ।

କିରଗୀଜ୍ ସ୍ତ୍ରୀଲୋକଟି ଗୋଟିଏ ଚା'ମୁଣ୍ଡା ଆଣି କାହ୍ନୁ ଓ ଜହ୍ନମାମୁଁଙ୍କୁ ଦେଖାଇଲା । କହିଲା—ଚା ଗଛର ଅଗପତ୍ରଗୁଡ଼ିକ ତୋଳିନେବା ପରେ ଯେଉଁ ବଡ଼ ବଡ଼ ପତ୍ର ଓ ଦାଣ୍ଡି ରହିଯାଏ ସେଗୁଡ଼ିକ ଏକାଠି ପେଷି ଦିଆ ହୁଏ । ସେଥିରେ ଭାତ କିମ୍ବା ବାର୍ଲିମଣ୍ଡ ମିଶାଇ, ଖରାରେ ଶୁଖାଇ ଦେଲେ ମୁଣ୍ଡା ଧରିଯାଏ । ତା'ପରେ ଏହାକୁ ଇଟା ଆକାରରେ ଖଣ୍ଡ ଖଣ୍ଡ କରି କାଟି ଦିଆଯାଏ । ଏପରି ମୁଣ୍ଡା ଚା ନେବା ଆଣିବାକୁ ସୁବିଧା । ଆମେ ହାଟରୁ ଏହି ଚା ଆଣି ରଖିଥାଉ ।

କିରଗୀଜ୍ ସ୍ତ୍ରୀଲୋକଟି ଦୁଇ ପିଆଲା ଚା' ଆଣି କାହ୍ନୁ ଓ ଜହ୍ନମାମୁଁଙ୍କୁ ଦେଲା ।

କାହ୍ନୁ ଓ ଜହ୍ନମାମୁଁ ଚା' ପିଇ କହିଲେ—ଏ ଚା'ଖୁବ୍ ଭଲ ଲାଗୁଛି । ଏହାର ରଙ୍ଗ ଚା' ରଙ୍ଗପରି କହରା ହୋଇଛି ।

ଚା' ଭଲ ହୋଇଛି ଶୁଣି କିରଗୀଜ୍ ସ୍ତ୍ରୀଲୋକଟି ଭାରି ଖୁସି ହୋଇ କହିଲା—ଆମେ ଚା' କପରି ପ୍ରସ୍ତୁତ

କରୁ ଜାଣ ? ଆମେ ମୁଣ୍ଡା ଚା'କୁ ଫୁଟନ୍ତା ପାଣିରେ ପକାଇ ଦେଉ । ସେଥିରେ ଚିମୁଟେ ସୋଡ଼ା ପକାଇଦେଲେ ତାହାର ରଙ୍ଗ କହରା ହୋଇଯାଏ । ତା'ପରେ ଏହାକୁ ଗୋଟିଏ ପାତ୍ରରେ ଢାଳି ସେଥିରେ ଲହୁଣି ଓ ଲୁଣ ପକାଇ ମନ୍ଥି ଦେଉ ।

କାହ୍ନୁ କହିଲା—ଆମ ଦେଶରେ ଚା' ପାଣିରେ ଦୁଧ ଓ ଚିନି ମିଶାଇ ଖାଉ । ଏ ନୂଆ ପ୍ରକାର ଚା' ତା' ଠାରୁ ଭଲ ଲାଗିଲା ।

ତା'ପରେ କିରଗୀଜ୍ ସ୍ତ୍ରୀଲୋକଟି ଧୂଆଁପତ୍ରରେ ତିଆରି ପିକା ଆଣି ଦେଲା । କାହ୍ନୁ ଓ ଜହ୍ନମାମୁଁ ପିକା ଟାଣିଲେ ନାହିଁ । କିନ୍ତୁ କିରଗୀଜ୍ ପୁରୁଷ, ସ୍ତ୍ରୀ, ବାଳକ ଓ ବାଳିକା ସମସ୍ତେ ପିକା ଟାଣିଲେ ।

ଖାଇପିଇସାରି କାହ୍ନୁ ଓ ଜହ୍ନମାମୁଁ କିଛିକ୍ଷଣ ବିଶ୍ରାମ ନେଲେ । କିରଗୀଜ୍ ପୁରୁଷ ଓ ବାଳକମାନେ ପଡ଼ିଆରେ ପଶୁପଲଙ୍କୁ ଚରାଇବାକୁ ବାହାରିଗଲେ । ସ୍ତ୍ରୀଲୋକ ଓ ବାଳିକାମାନେ ପୋଷାକ ତିଆରି କରିବାରେ ଲାଗିଲେ ।

ବେଳ ବୁଡ଼ିବାରୁ ପଶୁପଲ ଚରାଭୂଇଁରୁ ଫେରି ଆସିଲେ । ସ୍ତ୍ରୀଲୋକମାନେ ଛେଳି, ମେଣ୍ଢା, ଓଟ ଓ ଘୋଡ଼ୀଙ୍କ ଠାରୁ ଦୁଧ ଦୁହିଁଲେ ।



କିରଗୀଜ୍ ସ୍ତ୍ରୀଲୋକ ଘୋଡ଼ୀ ଦୁହୁଁଛି

ଗ୍ରୀଷ୍ମକାଳରେ ଏ ଅଞ୍ଚଳରେ ଖୁବ୍ ଭଲ ଘାସ ହୁଏ । ପଶୁଗୁଡ଼ିକ ପେଟ ପୂରାଇ ଘାସ ଖାଇବାକୁ ପାଆନ୍ତି । ସେଥିପାଇଁ ସେମାନେ ବେଶି ଦୁଧ ଦିଅନ୍ତି ।

ଦୁଧ ଦୁହିଁସାରି ସ୍ତ୍ରୀଲୋକମାନେ ତାହାକୁ ନିଆଁରେ ବସାଇ ଆଉଟିଲେ । କିଛି ଦୁଧରୁ ଛେନା ତିଆରି କଲେ ।

ଏ ଅଞ୍ଚଳରେ କାଠ କି କୋଇଲା ମିଳେ ନାହିଁ । ତେଣୁ କିରଗୀଜ୍‌ମାନେ ଓଟର ମଳକୁ ଶୁଖାଇ ରଖିଥାନ୍ତି । ଏହାକୁ ଜାଳି ରନ୍ଧାରନ୍ଧି କରନ୍ତି ।

ରାତି ହେଲା । ସମସ୍ତେ ତମ୍ବୁ ଭିତରେ ଆଶ୍ରୟ ନେଲେ । ଦୁଇଜଣ ଅତିଥି ଆସି ପହଞ୍ଚିଛନ୍ତି । ଆଜି ରାତିଟା କିରଗୀଜ୍‌ମାନେ ମଉଜମଜଲିସ୍ କରି କଟାଇବେ ।

ଗୋଟିଏ ଭୋଜିର ଆୟୋଜନ ହେଲା । ପଶୁମାନେ କିରଗୀଜ୍‌ଙ୍କର ଅମୂଲ୍ୟ ସମ୍ପଦ । ଏମାନଙ୍କୁ ହାଣି ମାଂସ ଖାଇବା କିରଗୀଜ୍‌ଙ୍କ ଦେହ ସହେ ନାହିଁ । କିନ୍ତୁ ଆଜି ଗୋଟିଏ ମଉଜ୍ ଦିନ । ସେଥିପାଇଁ ଗୋଟିଏ ମେଣ୍ଢା ହଣାହେଲା । ତା'ପରେ ସେମାନେ ମେଣ୍ଢାଟିର ଚମ ଉତାରି ତାହାକୁ ଖଣ୍ଡ ଖଣ୍ଡ କରି କାଟିଲେ । ସ୍ତ୍ରୀଲୋକମାନେ ଏହି ମାଂସକୁ ଲୁହାପାତ୍ରରେ ଚର୍ବିଦେଇ ଭାଜିଲେ ।

ରନ୍ଧାରନ୍ଧି ସରିବାରୁ ସମସ୍ତେ ତମ୍ବୁ ଭିତରେ ବୃତ୍ତାକାରରେ ବସିଲେ । ପ୍ରଥମ ଧାଡ଼ିରେ କାହ୍ନୁ, ଜହ୍ନମାମୁଁ ଓ ପୁରୁଷ ଲୋକମାନେ, ଦ୍ୱିତୀୟ ଧାଡ଼ିରେ ବାଳକ ଓ ବାଳିକାମାନେ ଏବଂ ଶେଷ ଧାଡ଼ିରେ ସ୍ତ୍ରୀଲୋକମାନେ ବସିଲେ ।

ଜଣେ ସ୍ତ୍ରୀଲୋକ ପାଣି ଆଣିଲା । ସେଥିରେ ସମସ୍ତେ ହାତ ଧୋଇଲେ ।

ଗୋଟିଏ ପାତ୍ରରେ ମାଂସତକ ରଖା ହୋଇଥାଏ । କିରଗୀଜ୍‌ମାନଙ୍କର ଯେ ମୁରବି ସେ ପାତ୍ରଟିରେ ହାତ

ପୂରାଇ ଦୁଇମୁଣ୍ଡା ମାଉଁସ ଉଠାଇ ଆଣିଲେ । କାହ୍ନୁ ଓ ଜହ୍ନମାମୁଁଙ୍କୁ ଏହି ମାଂସ ଦୁଇଖଣ୍ଡ ଦେଇ ସେ ନିଜ ପାଇଁ ଆଉ ଖଣ୍ଡେ ମାଂସ ପାତ୍ରରୁ ଆଣିଲେ । ସେଥିରୁ ପୁଳାଏ ଖାଇ ତାଙ୍କ ପାଖରେ ଯେଉଁ କିରଗୀଜ୍ ପୁରୁଷଟି ବସିଥାଏ ତା' ହାତକୁ ବଢ଼ାଇଦେଲେ । ଏହପରି ମାଂସ ଖଣ୍ଡକ ଜଣକ ହାତରୁ ଅନ୍ୟ ଜଣକ ହାତକୁ ଯାଉଥାଏ । ଶେଷରେ ସ୍ତ୍ରୀଲୋକମାନଙ୍କର ଧାଡ଼ି ପାଖରେ ପହଞ୍ଚିଲା ବେଳକୁ ଖାଲି ହାଡ଼ଟି ଦେଖାଯାଉଥାଏ; ତା ଉପରେ ଟିକିଏ ଅଧେ ମାଉଁସ ଲାଗିଥାଏ । ସ୍ତ୍ରୀଲୋକମାନେ ଏହି ଟିକକ ମାଂସ ହାଡ଼ରୁ କାମୁଡ଼ି ନେଇ ଖାଇଲେ; ହାଡ଼ ଖଣ୍ଡଟା ତମ୍ବୁ ବାହାରକୁ ପକାଇ ଦେଲେ । ଏହିପରି ଖଣ୍ଡକ ପରେ ଆଉ ଖଣ୍ଡେ ମାଂସ ଖାଇସାରି ସମସ୍ତେ ହାତ ଧୋଇଲେ ।

କାହ୍ନୁ ଖଣ୍ଡେ ମାଂସରୁ ସବୁ ଖାଇ ପାରିଲା ନାହିଁ । ଜହ୍ନମାମୁଁ ତାଙ୍କ ନିଜ ଖଣ୍ଡକ ଖାଇସାରି କାହ୍ନୁ ଖଣ୍ଡକରୁ ବାକୀ ମାଂସତକ ଖାଇଲେ । ତଥାପି ତାଙ୍କ ପେଟ ପୂରିଲା ନାହିଁ, ଅଧିକା ଖଣ୍ଡେ ନେଲେ ।

ରାତି ଅଧିକ ହେବାରୁ ସମସ୍ତେ ଶୋଇବାକୁ ବାହାରିଲେ । ଖରାଦିନ—ଭାରି ଗରମ ହେଉଥାଏ । ସ୍ତ୍ରୀଲୋକମାନେ ତମ୍ବୁ ଭିତରେ ଶୋଇଲେ । କାହ୍ନୁ ଜହ୍ନମାମୁଁ ଓ କିରଗୀଜ୍ ପୁରୁଷଲୋକେ ତମ୍ବୁ ବାହାରେ

ଘାସ ଉପରେ ଶୋଇଲେ । ବାଳକ ଦୁଇଜଣ ଆଦୌ ଶୋଇଲେ ନାହିଁ । ସେମାନେ ରାତିସାରା ପଶୁପଲଙ୍କୁ ଜଗି ରହିଲେ । ବେଳେବେଳେ ଗଧିଆ ଆସି ପଶୁପଲରେ ପଶନ୍ତି ଓ କେତେକ ପଶୁଙ୍କୁ ଚୋରାଇ ନେଇଯାଆନ୍ତି । ସେଥିପାଇଁ ରାତିରେ ପଶୁପଲଙ୍କୁ ଜଗିବା ଦରକାର ।

ରାତି ପାହିଲା । କାହ୍ନୁ ଓ ଜହ୍ନମାମୁଁ ନିଦରୁ ଉଠି ଦେଖିଲେ ଯେ ସ୍ତ୍ରୀଲୋକ ଓ ବାଳିକାମାନେ ତମ୍ବୁ ଉଠାଇବାରେ ଲାଗଛନ୍ତି । ତମ୍ବୁର ସବୁ ଜିନିଷ ଓଟ ପିଠିରେ ଲଦା ହେଲା । ତମ୍ବୁ ଭିତରେ ଯେତେ ଜିନିଷ ଥିଲା ସେ ସବୁ ବନ୍ଧାବନ୍ଧି କରିଦେଲେ । ଏଗୁଡ଼ିକ ଗୋଟିଏ ଗାଡ଼ିରେ ବୋଝେଇ ହେଲା । ଏ ଗାଡ଼ିରେ ଚକ ନଥାଏ ।

କାହ୍ନୁ ଓ ଜହ୍ନମାମୁଁ ଏ ଦୃଶ୍ୟ ଦେଖି ତାଟକା ହୋଇଗଲେ । ଜଣେ କିରଗୀଜ୍ ଲୋକକୁ ପଚାରିଲେ—ତମେମାନେ ଏ ତମ୍ବୁ ଭାଙ୍ଗି ଜିନିଷପତ୍ର ନେଇ କୁଆଡ଼େ ବାହାରିଲ ?

କିରଗୀଜ୍—ଆମର ଏ ଜାଗାରେ ପାଣି ଓ ଚରା ସରିଗଲାଣି । ସେଥିପାଇଁ ଆମେ ଆଉ ଗୋଟିଏ ଜାଗାକୁ ଯିବୁ । ସେଠାରେ ପାଣି ମିଳିବ, ଘାସ ବି ମିଳିବ । ଏହିପରି ଆମେ ଜାଗାକୁ ଜାଗା ବୁଲିଥାଉ । ଯେଉଁଠାକୁ

ଯାଉ, ଆମ ପଶୁପଲ ଓ ଜିନିଷପତ୍ର ସେଠାକୁ ସାଙ୍ଗରେ ନେଇଯାଉ ।

ଜହ୍ନମାମୁଁ କାହ୍ନୁକୁ କହିଲେ—କାହ୍ନୁ ! ଏମାନେ ଆଉ ଗୋଟାଏ ଜାଗାକୁ ବାହାରିଲେଣି । ଆମେ ଏହିଠାରୁ ଫେରିଯିବା ।

କାହ୍ନୁ—ନାଁ, ମାମୁଁ ! ଆମେ ଏ କିରଗୀଜ୍‌ମାନଙ୍କ ସାଙ୍ଗରେ ଗୋଟିଏ ଦିନ କଟେଇଲେ । ଆଉ ଦିନେ ନ ରହିଲେ ତାଙ୍କ ବିଷୟରେ ଆମେ ଭଲ କରି ଜାଣିପାରିବା ନାହିଁ ।

ଏହିପରି କହୁ କହୁ କିରଗୀଜ୍ ଦଳ ତାଙ୍କ ଯାତ୍ରା ଆରମ୍ଭ କରିଦେଲେ । ପ୍ରଥମେ ଜଣେ ପୁରୁଷ ଲୋକ ଘୋଡ଼ା ପିଠିରେ ଚଢ଼ି ବାହାରିଲା । ସେ ହାତରେ ଗୋଟିଏ ବର୍ଚ୍ଛା ଧରିଥାଏ । କିରଗୀଜ୍‌ମାନଙ୍କ ଘୋଡ଼ା ସାନ ହେଲେ ହେଁ ଖୁବ୍ ବଳୁଆ । କିରଗୀଜ୍ ପୁରୁଷଟି ଆଗରେ ବାଟ ଦେଖାଇ ଯାଉଥାଏ । ତା' ପଛରେ ଛେଳିଗୋଠ ଚାଲିଲେ । ଛେଳିଗୋଠ ପଛକୁ ମେଣ୍ଢାପଲ ଚାଲିଲେ । ଗାଡ଼ିରେ ଜିନିଷ ଲଦାହୋଇ ରହିଥିଲା । ଏହାକୁ ଓଟ ଟାଣି ନେଇଗଲେ । ସ୍ତ୍ରୀଲୋକ ଓ ବାଳିକାମାନେ ଗାଡ଼ି ପାଖେ ପାଖେ ଧୀରେ ଧୀରେ ଚାଲିଲେ । ଚାଲି ଚାଲି ଥକି ପଡ଼ିଲେ ଏମାନେ ଗାଡ଼ିରେ ବସି କିଛିଦୂର ଯାଆନ୍ତି । ବାଳକ ଦୁଇଜଣ ଘୋଡ଼ାରେ

ଚଢ଼ି ଯାଉଥାନ୍ତି । ପଶୁପଲ ହୁରୁଡ଼ିଗଲେ ସେମାନଙ୍କୁ ଏକାଠି କରିବା ବାଳକଙ୍କ କାମ ।

କାହ୍ନୁ ଓ ଜହ୍ନମାମୁଁ ସମସ୍ତଙ୍କ ପଛରେ ଚାଲିଲେ । ପଶୁମାନଙ୍କ ଖୁରାର ଟପ୍ ଟପ୍ ଶବ୍ଦ; ଗାଡ଼ିରେ କେଁ କେଁ ଶବ୍ଦ; ଘୋଡ଼ା, ମେଣ୍ଢା, ଛେଳି, ଓଟ ଓ ଗଧମାନଙ୍କର ବୋବାଳି ଏବଂ ପୁରୁଷ, ସ୍ତ୍ରୀଲୋକ ଓ ବାଳକବାଳିକାମାନଙ୍କ ହସକୌତୁକକର ଶବ୍ଦ ଏହି ନିସ୍ତବ୍ଧ ଷ୍ଟେପ ଅଞ୍ଚଳରେ କୋଳାହଳ ସୃଷ୍ଟି କରୁଥାଏ ।

କାହ୍ନୁ ଓ ଜହ୍ନମାମୁଁ କିଛିଦୂର ଯାଇ ଥକି ପଡ଼ିଲେ । ଜହ୍ନମାମୁଁ ଆଉ ଚାଲି ନ ପାରି ଗୋଟାଏ ଜାଗାରେ ବସି ରହିଲେ । ଜଣେ କିରଗୀଜ୍ ବାଳକ ଏ ଦୁଇଜଣଙ୍କୁ ନେଇଯାଇ ଗୋଟିଏ ଗାଡ଼ିରେ ବସାଇଦେଲା ।

କାହ୍ନୁ ବାଳକଟିକୁ କହିଲା—ହେ ଭାଇ ! ତମେ ମୋଠାରୁ ବି ସାନ । ଏତେ ଅଳ୍ପ ବୟସରେ ଘୋଡ଼ାଚଢ଼ା ଶିଖିଲ କିପରି ?

କିରଗୀଜ୍ ବାଳକ—ମୋର ଛ'ବର୍ଷ ନ ପୂରୁଣୁ ମୁଁ ଘୋଡ଼ାଚଢ଼ା ଶିଖି ସାରିଲିଣି । ମୋଠାରୁ ବଡ଼ ବାଳକମାନେ ଘୋଡ଼ାପିଠିରେ ଚଢ଼ି ବଲ୍ ଖେଳନ୍ତି । ସେମାନେ ହାତରେ ଗୋଟିଏ ଗୋଟିଏ ଲମ୍ବା ବାଡ଼ି ଧରିଥାନ୍ତି । ସେହି ବାଡ଼ିରେ ବଲ୍‌କୁ ଆଘାତ କରନ୍ତି ।

ଜହ୍ନମାମୁଁ ପଚାରିଲେ—ଆଉ କେତେଦୂର ଯିବାକୁ ହେବ ?

କିରଗୀଜ୍ ବାଳକଟି କହିଲା—ଆଉ ଅଳ୍ପଦୂର ଗଲେ ପାଣି ଓ ଘାସ ମିଳିବ । ଆମ ଜାତିର ପ୍ରତ୍ୟେକ ଦଳ ଲୋକଙ୍କ ପାଇଁ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳ ଅଛି । କେବେ କେବେ ଗୋଟାଏ ଦଳର ପଶୁପଲ ବଢ଼ିଗଲେ ସେମାନେ ଅନ୍ୟ ଦଳର ଅଞ୍ଚଳକୁ ପଶୁପଲ ନେଇ ଯାଆନ୍ତି । ଏଥିପାଇଁ ଅନେକ ସମୟରେ ଦୁଇ ଦଳଙ୍କ ଭିତରେ ବାଦ ବିବାଦ ହୁଏ ।



କିରଗୀଜ୍‌ମାନଙ୍କ ମେଣ୍ଢାପଲ ଚରୁଛନ୍ତି

ଦଳର ଆଗେ ଆଗେ ଯେଉଁ ପୁରୁଷ ଲୋକଟି ଘୋଡ଼ାରେ ଚଢ଼ି ଯାଉଥିଲା, ସେ ପ୍ରଥମେ ଗୋଟାଏ ଜାଗାରେ ଘୋଡ଼ାକୁ ଅଟକାଇଲା । ସେଠରେ ପ୍ରଚୁର ଘାସ ଓ ପାଣି ଥାଏ । ଯେଉଁମାନେ ପଛରେ ଯାଉଥିଲେ ସେମାନେ ଜାଣିଲେ ଯେ ଏହିଠାରେ ତାଙ୍କ ଯାତ୍ରା ଶେଷ ହେବ । ସେମାନେ ଆହୁରି ଧୀରେ ଧୀରେ ଯିବାକୁ ଲାଗିଲେ ।

ଘୋଡ଼ାଗୁଡ଼ିକ ଆଗେ ଯାଇ ପହଞ୍ଚିଲେ । ସେ ସ୍ଥାନରେ ଲମ୍ବା ଲମ୍ବା କଅଁଳିଆ ଘାସ ହୋଇଥାଏ । ସେମାନେ ପେଟପୂରାଇ ଘାସ ଚରିଲେ ଓ ଯେତେ ପାଣି ପିଇବାର ପିଇଲେ । ଘୋଡ଼ାଙ୍କ ପଛକୁ ଛେଳି, ଗଧ ଓ ଓଟମାନେ ପହଞ୍ଚିଲେ । ସେମାନେ ଯେତେ ଇଚ୍ଛା ସେତେ ଘାସ ଚରିଗଲେ । ଶେଷରେ ଯାଇ ପହଞ୍ଚିଲେ ମେଣ୍ଢାପଲ । ମେଣ୍ଢାଗୁଡ଼ିକ ସାନ ସାନ ଘାସ ଖୁଣ୍ଟି ଖାଇ ପାରନ୍ତି । ଏମାନେ ଘାସର ମୂଳ ଅଂଶଗୁଡ଼ିକ ଖୁଣ୍ଟି ଖାଇଲେ ।

ପଶୁପଲଙ୍କ ସହିତ ଦଳର ସମସ୍ତେ ସେହି ଜାଗାରେ ପହଞ୍ଚିଲେ । କାହ୍ନୁ ଓ ଜହ୍ନମାମୁଁ ସମସ୍ତଙ୍କ ପଛରେ ଆସି ପହଞ୍ଚିଲେ । ସେତେବେଳକୁ ସ୍ତ୍ରୀଲୋକମାନେ ତମ୍ବୁ ଖାଞ୍ଚୁଥାନ୍ତି । ତମ୍ବୁ ଖଞ୍ଜା ହୋଇଯିବାରୁ ବାଳିକାମାନେ ତା' ଭିତରେ ଜିନିଷପତ୍ର ସଜାଡ଼ି ରଖିଲେ । ଏ ସବୁ

କାମ କରିବାକୁ ଅଧଘଣ୍ଟାଏ ବି ଲାଗିଲା ନାହିଁ ।

ଏତେବେଳକୁ ଦିନ ଦୁଇ ପହର ହେଲାଣି । ଜହ୍ନମାମୁଁଙ୍କୁ ଭାରି ଭୋକ ଲାଗିଲାଣି । ସେ କାହ୍ନୁକୁ ପଚାରିଲେ—ଏମାନଙ୍କ ଖାଇବା ବେଳ କ'ଣ ହୋଇ ନାହିଁ ? କାହିଁ, କେହି ତ ଆମକୁ ଖାଇବାକୁ ଡାକୁ ନାହାନ୍ତି ?

କାହ୍ନୁ ପିଲାଲୋକ ହେଲେ କ'ଣ ହେଲା, ଭୋକ ଲାଗିଲେ ସେ ଜହ୍ନମାମୁଁଙ୍କ ପରି ଅସମ୍ଭାଳ ହୋଇପଡ଼େ ନାହିଁ ।

କାହ୍ନୁ କହିଲା—ଦେଖ ମାମୁଁ ! ସେମାନେ ଗୋଟାଏ, ନୂଆ ଜାଗାରେ ଆସି ପହଞ୍ଚିଲେ । ଖିଆପିଆର ଆୟୋଜନ କରି ଆମକୁ ଡାକିବେ । ତମେ ଟିକିଏ ଥୟ ଧରି ରହ ।

କାହ୍ନୁ ଓ ଜହ୍ନମାମୁଁ ତମ୍ବୁ ଭିତରେ ଗାଲିଚାରେ ବସି ବିଶ୍ରାମ ନେଉଥାନ୍ତି । ଜଣେ କିରଗୀଜ୍ ପୁରୁଷ ତାଙ୍କ ପାଖକୁ ଆସି କହିଲା—ତମ ଦୁଇଜଣଙ୍କୁ ଏ ଯାତ୍ରା ବଡ଼ ବାଧୁଥିବ । ଆମେ ସାତଦିନ ଭିତରେ ଦୁଇ ତିନିଥର ଜାଗାକୁ ଜାଗା ଯାଉ । ଆମର ଅଭ୍ୟାସ ପଡ଼ିଗଲାଣି, କିଛି କଷ୍ଟ ହୁଏ ନାହିଁ । ତେବେ ବି ବେଳେ ବେଳେ ଦୁର୍ଯୋଗ ଆସି ପହଞ୍ଚେ ।

ଜହ୍ନମାମୁଁ—ତମେମାନେ ଘର ଓ ସମ୍ପତ୍ତି ସାଙ୍ଗରେ ନେଇ ଆରାମରେ ରହିଛ । ତମର ଆଉ ଦୁର୍ଯୋଗ କ'ଣ ?

କିରଗୀଜ୍—ସବୁଦିନ ସମାନ ଯାଏ ନାହିଁ । ବର୍ଷେ ବର୍ଷେ ଏପରି ଖରା ହୁଏ ଯେ ବାମ୍ଫୀ ସବୁ ଶୁଖିଯାଏ । ଆମ ପଶୁପଲ ପାଣିଟୋପାଏ ନ ପାଇ ଶୋଷରେ ମରନ୍ତି । କେବେ କେବେ ପଶୁମାନଙ୍କ ମଧ୍ୟରେ ଫାଟୁଆ ରୋଗ ଦେଖାଯାଏ । ଏ ରୋଗ ଧରିଲେ ପଶୁଗୁଡ଼ାକ ପଟାପଟ୍ ମରିଯାଆନ୍ତି । ତା'ଛଡ଼ା ଭୋକିଲା ଗଧିଆ ସବୁ ଆସି ପଲ ଭିତରେ ଉତ୍ପାତ କରନ୍ତି । ପଶୁପାଳନ ଆମ କାମ । ଏ କାମ କିପରି କଷ୍ଟ ଦେଖୁଛ ତ ?

କାହ୍ନୁ ଏସବୁ କଥା ଶୁଣି ଚମକି ପଡ଼ିଲା । କିରଗୀଜ୍ ପୁରୁଷ ଲୋକଟି ପୁଣି କହିଲା—ଥରେ କଣ ହେଲା କି, ଶୀତଦିନେ ଉତ୍ତର ଆଡୁ ଥଣ୍ଡା କାଲୁଆ ପବନ ଦୁଇଦିନ ଧରି ବହିଲା । ଥଣ୍ଡା ସହି ନ ପାରି ଶହ ଶହ ଘୋଡ଼ା, ମେଣ୍ଢା, ଓଟ ଓ ଛେଳି ମରିଗଲେ । ଖାଲି ଯେ ପଶୁ ମଲେ ତା' ନୁହେଁ, ଦଳରେ ଯେତେ ସ୍ତ୍ରୀଲୋକ ଓ ପିଲାପିଲି ଥିଲେ ସେମାନେ ବି ଏ ଥଣ୍ଡା ସହି ପାରିଲେ ନାହିଁ । ଏପରି ଦୈବ-ବିପତ୍ତିକୁ ହାତ କାହାର ଅଛି ?

ଜହ୍ନମାମୁଁ ପଚାରିଲେ—ଶୀତକାଳରେ ତମେମାନେ କ'ଣ ଏହି ତମ୍ବୁ ଭିତରେ ଥାଅ ?

କିରଗୀଜ୍ ପୁରୁଷ—ନା, ଶୀତକାଳରେ ଆମେ ଏହି ସମତଳ ଭୂମି ଅତିକ୍ରମ କରି ଆଖପାଖରେ କୌଣସି ପାହାଡ଼ ତଳକୁ ଚାଲିଯାଉ । ସେଠାରେ କାଠର ଘର ତିଆରି କରି ରହୁ । ଘର ଚାରି ପାଖରେ ଗୋଟିଏ କାଠର ପାଚେରୀ ତିଆରି କରୁ । ଏହା ଭିତରେ ପଶୁପଲଙ୍କୁ ଛାଡ଼ିଦେଉ । ସେମାନେ ଥଣ୍ଡା ଉତ୍ତରା ପବନରୁ ରକ୍ଷା ପାଆନ୍ତି ।



ଜହ୍ନମାମୁଁ–ପଶୁ ପାଳିବା ବାସ୍ତବିକ୍ କଷ୍ଟକର କାମ । କିନ୍ତୁ ତମେମାନେ କାମଗୁଡ଼ିକ ବାଣ୍ଟି ବୁଝି କରି ନେଉଛ । ସେଥିପାଇଁ କାମର ଭିଡ଼ ପଡୁ ନାହିଁ ।

କିରଗୀଜ୍ ପୁରୁଷ–ହଁ, ଠିକ୍ । ଆମ ସ୍ତ୍ରୀଲୋକମାନେ ବଡ଼ କାମିକା । ତମ୍ବୁ ଉଠାଇବା, ତମ୍ବୁ ପକାଇବା, ଜିନିଷପତ୍ର ବନ୍ଧାବନ୍ଧି କରିବା, ରନ୍ଧାବଢ଼ା କରିବା ଓ ପିଲାଛୁଆଙ୍କ ଯତ୍ନ ନେବା–ଏସବୁ କାମ ସ୍ତ୍ରୀଲୋକମାନଙ୍କର । ମଣିଷ ହେଉ ବା ପଶୁ ହେଉ, କାହାରି ବେରାମ ଆରମ ହେଲେ ସ୍ତ୍ରୀଲୋକମାନେ ସେମାନଙ୍କୁ ଦେଖାଚାହାଁ କରନ୍ତି । ତା'ଛଡ଼ା ସେମାନେ ପଶୁମାନଙ୍କ ଲୋମରୁ ସୂତା କାଟନ୍ତି ଓ ପୋଷାକପତ୍ର ତିଆରି କରନ୍ତି । ଏସବୁ କାମରେ ବାଳିକାମାନେ ସେମାନଙ୍କୁ ସାହାଯ୍ୟ କରନ୍ତି । ଦିନରାତି ପଶୁପଲଙ୍କ ଯତ୍ନ ନେବା ପୁରୁଷ ଲୋକଙ୍କ କାମ । ବାଳକମାନେ ଘୋଡ଼ାରେ ଚଢ଼ି ପଶୁପଲଙ୍କୁ ଜଗନ୍ତି ।

କାହ୍ନୁ–ବାଳକମାନେ ତେବେ ପାଠ ପଢ଼ନ୍ତି କେତେବେଳେ ?

କିରଗୀଜ୍ ପୁରୁଷ–ସେମାନେ ପାଠ ପଢ଼ନ୍ତି ନାହିଁ । ତେଣୁ ଏ ଅଞ୍ଚଳରେ ସ୍କୁଲ ନାହିଁ । ସେମାନେ ଘୋଡ଼ାଚଢ଼ା ଶିଖନ୍ତି । ପଶୁମାନେ ଗୋଠ ଛାଡ଼ି ଗଲେ ତାଙ୍କୁ ଅଡ଼େଇ ଆଣନ୍ତି ।

ଏହି ସମୟରେ ଜଣେ କିରଗୀଜ୍ ସ୍ତ୍ରୀଲୋକ ଆସି କାହ୍ନୁ ଓ ଜହ୍ନମାମୁଁଙ୍କୁ ଖାଇବାକୁ ଡାକିଲା । ସ୍ତ୍ରୀଲୋକଟି କାଠ ତାଟିଆରେ ଗହମ ସିଝା ଆଣି ଦେଲା । ସେଥିରେ ଦହି ମିଶିଥାଏ । ଜହ୍ନମାମୁଁ ଓ କାହ୍ନୁ ଏ ନୂଆ ଖାଦ୍ୟ ଖାଇ ଭାରି ଖୁସି ହେଲେ ।

ତା'ପରେ ସ୍ତ୍ରୀଲୋକଟି ଛେନା ଓ ଲହୁଣି ଆଣି ଦେଲା । ଏ ଖାଦ୍ୟ ଦେଖି କାହ୍ନୁ ଓ ଜହ୍ନମାମୁଁ ଆହୁରି ଖୁସି ହେଲେ । ସେମାନେ ଏତେ ଛେନା ଓ ଲହୁଣି ଖାଇବାକୁ ପାଆନ୍ତି ନାହିଁ ।

ଜହ୍ନମାମୁଁ ପେଟବିକଳିଆ ଲୋକ । ଏଥିରୁ ସେ ବହୁତ ଗୁଡ଼ାଏ ଖାଇଲେ ।

ଶେଷରେ ସ୍ତ୍ରୀଲୋକଟି ସୂର୍ଯ୍ୟମୁଖୀ ଫୁଲର କେତେଗୁଡ଼ିଏ ମଞ୍ଜି ଆଣିଦେଲା ।

କାହ୍ନୁ ପଚାରିଲା—ଏ ମଞ୍ଜି ଗୁଡ଼ିକ ଆଣିଲ କାହିଁକି ?

ସ୍ତ୍ରୀଲୋକ—ଏଗୁଡ଼ିକ ଆମେ ଚୋବାଇ ଖାଉ । ଚୋବାଇଲେ ଏଥିରୁ ତେଲ ବାହାରେ । ତମ ଦୁଇଜଣଙ୍କ ପାଇଁ ଏତକ ଆଣିଛି ।

ଜହ୍ନମାମୁଁ ପୁଞ୍ଜାଏ ମଞ୍ଜି ନେଇ ପାଟିରେ ପକାଇ

ଦେଲେ । ଖଟା, ମିଠା, ପିତା, କଷା, ରାଗ—ଏସବୁ ସେ କିଛି ବାରନ୍ତି ନାହିଁ । ଖାଉ ଖାଉ ସେ ମୁଠାଏ ମଞ୍ଜି ଖାଇଦେଲେ ।

କାହ୍ନୁ ଦୁଇଟା ମଞ୍ଜି ପାଟିରେ ପୂରାଇଲା । ଅଳ୍ପ ଚୋବାଇ ଦେଖିଲା ଯେ ବଡ଼ ବିଚିକିଟିଆ ଲାଗୁଛି । ସେ ଥୁ ଥୁ କରି ମଞ୍ଜି ଦୁଇଟା ପକାଇ ଦେଲା ।

ଅତିଥି ଦୁଇଜଣ ଖାଇପିଇ ସାରିଲା ପରେ କିରଗୀଜ୍ ସ୍ତ୍ରୀଲୋକଟି ଚାଲିଗଲା । ଅତିଥିଙ୍କ ସାଙ୍ଗରେ କଥାବାର୍ତ୍ତା କରିବା ପାଇଁ ପରିବାରର ଯେ ମୁରବି ସେ ଆସିଲେ ।

ତାଙ୍କ ବେଶଭୂଷା ଦେଖି ଜହ୍ନମାମୁଁ କହିଲେ—ତମେ ତ ଏ ଅପନ୍ତରା ରାଇଜରେ ଏଡ଼େ ସୁନ୍ଦର ପୋଷାକ ପାଇଲ କିପରି ?

କିରଗୀଜ୍—ଏ ପୋଷାକ ଆମ ଘରତିଆରି ପୋଷାକ। ଦେହରେ ମୁଁ ଯେଉଁ ଲମ୍ବା, ଢିଲା ପୋଷାକ ପିନ୍ଧିଛି ତାହା ପଶୁଲୋମରେ ତିଆରି । ଶୀତକାଳରେ ଏହି ପୋଷାକ ତଳେ ଆମେ ଗୋଟିଏ କୁର୍ତ୍ତା ଓ ପାଇଜାମା ପିନ୍ଧୁ । ଗୋଡ଼ରେ ନରମ ଚମଡ଼ାରେ ତିଆରି ବୁଟ୍ ଜୋତା ପିନ୍ଧୁ । ଏ ଜୋତା ଗୋଡ଼କୁ ଆଣ୍ଠୁ ପର୍ଯ୍ୟନ୍ତ ଘୋଡ଼ାଇ ରଖେ । ମୁଣ୍ଡରେ ଯେଉଁ ଟୋପି ଦେଖୁଛ ତାହା ମେଣ୍ଢା ଚମଡ଼ାରେ ତିଆରି । ଘରର ସ୍ତ୍ରୀଲୋକମାନେ

ଏସବୁ ପୋଷାକ ହାତରେ ତିଆରି କରିଛନ୍ତି ।



କିରଗୀଜ୍ ଲୋକଙ୍କ ପୋଷାକ

ଜହ୍ନମାମୁଁ ପଚାରିଲେ—ସବୁ ପୁରୁଷ ଲୋକେ କ'ଣ ଏହିପରି ପୋଷାକ ପିନ୍ଧନ୍ତି ?

କିରଗୀଜ—ନା, ଆମ ଭିତରୁ କେତେକଙ୍କର ପଶୁ ସମ୍ପତ୍ତି ବେଶି, ସେମାନେ ଧନୀ । ସେମାନେ ମଖମଲର ପୋଷାକ ପିନ୍ଧନ୍ତି । ସେଥିରେ ସୁନେଲି ଓ ରୂପେଲି ରଙ୍ଗର ଜରି ଲାଗିଥାଏ । ସେମାନଙ୍କ ଅଣ୍ଟାରେ ଯେଉଁ ପଟି ବନ୍ଧା ହୋଇଥାଏ, ସେଥିରେ ସୁନା, ରୁପା ଓ ଦାମିକା ପଥର ଖଞ୍ଜା ହୋଇଥାଏ ।

କାହ୍ନୁ—ଧନୀ ଓ ଦରିଦ୍ର ଲୋକଙ୍କ ପୋଷାକ ଆମ ଦେଶରେ ବି ଭିନ୍ନ ଭିନ୍ନ ରକମର ।

କିରଗୀଜ୍—ଆମ ସ୍ତ୍ରୀଲୋକମାନଙ୍କ ପୋଷାକ ମଧ୍ୟ ପ୍ରାୟ ଏହିପରି । ପ୍ରଭେଦ ଏତିକି ଯେ ସେମାନେ ମେଣ୍ଢା ଚମଡ଼ାର ଟୋପି ନ ପିନ୍ଧି ମୁଣ୍ଡରେ ଖଣ୍ଡେ ଧଳା ରୁମାଲ ଗୁଡ଼ାଇ ଦିଅନ୍ତି ।

ଜହ୍ନମାମୁଁ ପଚାରିଲେ—ତମ ପରିବାରରେ ବାରଜଣ ଲୋକ ଅଛନ୍ତି । ତମର ଗୋଟିଏ ବଡ଼ ପରିବାର ?

କିରଗୀଜ୍—ନା, ଏହାଠାରୁ ବଡ଼ ପରିବାର ଅଛି । ଯେଉଁ ପରିବାର ଯେତେ ବେଶି ପଶୁ ପାଳିବେ, ତାଙ୍କର ସେତେ ବେଶି ଲୋକ ଦରକାର ହେବ । ବାରଜଣରୁ କମ୍ ଲୋକ ପରିବାରରେ ଥିଲେ ସେ ପରିବାର ମୁଣ୍ଡ ଟେକି ପାରିବ ନାହିଁ । କାରଣ ଅଳ୍ପ ଲୋକ ଭଲରୂପେ ପଶୁପାଳନ କରିପାରିବେ ନାହିଁ ।

ବେଳ ବୁଡ଼ି ଆସୁଛି ଦେଖି ଜହ୍ନମାମୁଁ କାହ୍ନୁଙ୍କୁ କହିଲେ—ରେ କାହ୍ନୁ ! ଚାଲ, ଏଠାରୁ ଯିବା ।

କାହ୍ନୁ କହିଲା—ଆମେ ଜଣ ଜଣ କରି ସମସ୍ତଙ୍କଠାରୁ ବିଦାୟ ନେଇଯିବା । ତା' ନହେଲେ ଏ କିରଗୀଜ୍‌ମାନେ ଭାବିବେ—ଏ ପୋଲାଖିଆ ଦୁଇଜଣ କୁଆଡୁ ଆସିଥିଲେ; ଖାଇପିଇ ସାରି ମୁହଁ ପୋଛିଦେଇ ଗଲେ ।

ଜହ୍ନମାମୁଁ—ମୋ ଟିକି ଭଣଜାଟି ବଡ଼ ହୁସିଆର ପିଲା । ସେ ନ ଥିଲେ ଏ ବୁଦ୍ଧି ମୋତେ କାହୁଁ ଦିଶନ୍ତା ?

ଜହ୍ନମାମୁଁ କିରଗୀଜ୍‌କୁ କହିଲେ—ଆମେ ତମ ଗହଣରେ ଦୁଇଦିନ ରହିଲୁଣି । ଏବେ ଆମେ ଆମ ଦେଶକୁ ବାହାରିଯିବୁ । ତମଠାରୁ ଆଗ ବିଦାୟ ନେଉଛୁ, ତା'ପରେ ଆଉ ସମସ୍ତଙ୍କଠାରୁ ବିଦାୟ ନେବୁ ।

କିରଗୀଜ୍—ଆମର ବଡ଼ ଭାଗ୍ୟର କଥା ଯେ ତମେ ଦୁଇଜଣ ଏତେ ଦୂରଦେଶରୁ ଆସି ଆମ ହାଲଚାଲ ବୁଝିଗଲ ।

କିରଗୀଜ୍ ମୁରବି ଜଣଙ୍କ ପରିବାରର ସମସ୍ତଙ୍କୁ ସେଠାକୁ ଡାକି ଆଣିଲେ । କାହ୍ନୁ ଓ ଜହ୍ନମାମୁଁ ସମସ୍ତଙ୍କଠାରୁ ବିଦାୟ ନେଲେ ।

ବାଳକ ଦୁଇଜଣ କାହ୍ନୁ କାନରେ ଚୁପ୍ ଚୁପ୍ କରି କ'ଣ କହିଲେ କାହ୍ନୁ ହସି ହସି କହିଲା–ହଁ, ସୁବିଧା ହେଲେ ପୁଣି ଥରେ ଆସିବୁ ।

କାହ୍ନୁ ଓ ଜହ୍ନମାମୁଁ କିରଗୀଜ୍‌ମାନଙ୍କ ଠାରୁ ବିଦାୟ ନେଇ ଠେକୁଆ ପିଠିରେ ଚଢ଼ି ନିଜ ଦେଶକୁ ବାହୁଡ଼ି ଗଲେ ।



ଜହ୍ନମାମୁଁ ଓ କାହ୍ନୁ ଠେକୁଆ ପିଠିରେ ବସି ଆକାଶରେ ଉଡ଼ି ଯାଉଛନ୍ତି

କାହ୍ନୁ ଓ ଜହ୍ନମାମୁଁ କିରଗୀଜ୍‌ମାନଙ୍କ ଦେଶ ବୁଲି ସେମାନଙ୍କ ସାଙ୍ଗରେ ରହି ଯାହାସବୁ ଦେଖି ଆସିଲେ, ତାହା କେତେ ବର୍ଷ ତଳର କଥା । ଏବେ କିରଗୀଜ୍‌ମାନଙ୍କର ଆଖି ଫିଟିଲାଣି । ସେମାନଙ୍କ ପିଲାମାନେ ସହରକୁ ଆସି ସ୍କୁଲରେ ପାଠ ପଢ଼ିଲେଣି । ତାଙ୍କ ଭିତରୁ ଅନେକ ପଶୁପାଳନ ନ କରି କଳକାରଖାନାରେ କାମ କରିବାକୁ ମନ ବଳାଇଲେଣି । ସେମାନଙ୍କ ଚରାଭୂଇଁର କେତେକ ଅଂଶରେ ଚାଷବାସ ହେଲାଣି । ଆଉ କେତେକ ଅଂଶରେ ସଡ଼କ, ରେଳରାସ୍ତା, ବିମାନଘାଟି ତିଆରି ହେଲାଣି ।

ତଥାପି ଅଧିକାଂଶ କିରଗୀଜ୍ ତାଙ୍କ ଆଇମା' ଅମଳ ପଶୁପାଳନ ବୃତ୍ତି ଛାଡ଼ିବାକୁ ନାରାଜ ।



# ଷ୍ଟେପ୍ ଅଞ୍ଚଳ : କିରଗିଜ୍ ପିଲା ୫



## ଏହି ସିରିଜ୍‌ର ଅନ୍ୟାନ୍ୟ ବହି

- ☆ ସୂର୍ଯ୍ୟୋଦୟ ଦେଶ : ଜାପାନୀ ପିଲା
- ☆ ବରଫ ଦେଶ : ଏସ୍କିମୋ ପିଲା
- ☆ ଉତପ୍ତ ମରୁଭୂମି : ବେଦୁଇନ୍ ପିଲା
- ☆ ତୃଣଭୂମି : ଲୋହିତ ଭାରତୀୟ ପିଲା
- ☆ ସାଭାନା ଅଞ୍ଚଳ : ନିଗ୍ରୋ ପିଲା
- ☆ ନିଶୀଥ ସୂର୍ଯ୍ୟର ଦେଶ : ନରଓ୍ୱେ ଦେଶର ପିଲା
- ☆ ବଣ ଜଙ୍ଗଲର ଦେଶ : ପିଗ୍‌ମୀ ପିଲା

 ବିଦ୍ୟାପୁରୀ, କଟକ ୭୫୩୦୦୨